poetry of the hidden heart

ସୁନୀତି ମୁଣ୍ଡ

# ଯେତେ ସବୁ ସକାଳ

ଈଶ୍ୱରୀୟ ଅନୁଭବରେ ମାନବୀୟ ପ୍ରେମ



**ପଦେ-**

**'ଯେତେସବୁ ସକାଳ'** ଏକ ଦୀର୍ଘ କବିତା। ଈଶ୍ୱରୀୟ ଅନୁଭବରେ ମାନବୀୟ ପ୍ରେମ କଥା ଉପରେ ଆଧାରିତ ଏହି ପୁସ୍ତକ। ପୂର୍ବରୁ ଏହାର ଦୁଇଟି ସଂସ୍କରଣ କେବଳ ଓଡିଆରେ ପ୍ରକାଶ ପାଇ ଲୋକାଦୃତି ପାଇ ସାରିଛି । ଏହାର ହିନ୍ଦି ଏବଂ ଇଂରାଜୀ ଅନୁବାଦ ମଧ୍ୟ ହୋଇସାରିଛି । ଅନୁବାଦ କ୍ଷେତ୍ରରେ ନିଜର ସ୍ଥିତିକୁ ସୁଦୃଢ଼ କରିପାରିଥିବା ପ୍ରଫେସର (ଡଃ) ଶ୍ରୀଯୁକ୍ତ ଶଙ୍କରଲାଲ ପୁରୋହିତ ଏହାକୁ ହିନ୍ଦିରେ ଅନୁବାଦ କରିଥିବାବେଳେ ସଂପାଦକ ଶ୍ରୀଯୁକ୍ତ ହିମାଂଶୁ କୁମାର ମହାପାତ୍ର ଏହାକୁ ଇଂରାଜୀରେ ଅନୁବାଦ କରିଛନ୍ତି। ବିଶିଷ୍ଟ କବି ଶ୍ରୀଯୁକ୍ତ ରମାକାନ୍ତ ରଥଙ୍କ ପରାମର୍ଶ ଏବଂ ଉପଦେଶ କବିତାକୁ ଅଧିକ ସମୃଦ୍ଧ ଓ ବଳିଷ୍ଠ କରିଛି । ପୂର୍ବରୁ ଏହାର ଦୁଇଟି ସଂସ୍କରଣ ପ୍ରକାଶ ପାଇ ଜନାଦୃତି ପାଇଛି, ଏଥିପାଇଁ ପାଠକମାନଙ୍କୁ ଅଶେଷ ଧନ୍ୟବାଦ । ପାଠକଙ୍କର ଏହି ଶ୍ରଦ୍ଧା ଏବଂ ଆଗ୍ରହ ହିଁ 'ଯେତେସବୁ ସକାଳ'କୁ ଆଜି ତୃତୀୟ ସଂସ୍କରଣରେ ପହଞ୍ଚାଇଛି ।

**-ସୁନୀତି**

# ଏକ

ପ୍ରତିଟି ସକାଳ ଆସେ
ନୂଆ ଭାବ ଆଉ
ନୂଆ ରୂପ ନେଇ ।

ମୋ ଉଦ୍ଦେଶ୍ୟରେ ଗଢାଥିବା ସକାଳ
ଶୂନ୍ୟତାରେ ଭରେ ପ୍ରୀତିର ବେପଥୁ ।
ଅତଏବ,
ପ୍ରତିଟି ଶୂନ୍ୟତା ଲୋଡେ ଏବେ
ତୁମ ମୁହାଁ ହେବାକୁ ।
ମାଛି ଅଂଧାର ସକାଳ
ଆଜିକାଲି ଖୁବ୍ ଭଲ ଲାଗେ
ଏଣୁ'ତ ତମାମ ରାତି ଉଜାଗର
ତୁମ ଉଦ୍ଦେଶ୍ୟରେ ।

ଛାତି ଫାଟି ଫାଟି ଯାଏ...
ବହଳ ଅଂଧାର ନେସି ହେଇ ଯାଏ
ଭରପୂର ସକାଳ ସାରା,
ତୁମେ ବିଦାୟନେବା ବେଳେ ।

ଓଦା ଭାବ ଭର୍ତି ଓଦା ମନତଳେ
ତୁମ ମୁହଁ ଛବି ହୋଇ ରହିଯାଏ
ପ୍ରତି ସକାଳରେ ଛାଇଯାଅ
ମୋ' ସାରା ଅସ୍ତିତ୍ୱରେ ।

ତୁମେ ଆଉ ମୁଁ
ମୁଁ ଆଉ ତୁମେ
ମାଛିଅଂଧାର କ୍ରମଶଃ
ବଢିଚାଲେ ସକାଳ ଆଡକୁ
ବିଦାୟ ବେଳ ନିକଟତର
ନୀରବ ଆର୍ତନାଦରେ
କଅଁଳଛାତି ବିଳପି ଉଠେ
ନିର୍ଦ୍ଦୟ ହେଉଥାଏ ସମୟ ଆମକୁ ।

## ଦୁଇ

ମୋ ନିଷ୍ପାପ ପଣକୁ ଏମିତି ଛୁଇଁବାରେ
ମନ ମୋର
ଚଂଚଳ ସତେଜତାରେ
ଜାଗି ଉଠିଲା ।
ଆଦିମ ସରୀସୃପ
ବେଢ଼ିଗଲା ସମଗ୍ର ଦେହରେ ।

କିଂତୁ ଛୁଇଁ ପାରିନି କି ବୁଝିପାରିନି
ତୁମର ଏସବୁ ନିଶ୍ଚୁପ ଖେଳକୁ ।
ଅତଏବ,
ଯଂତ୍ରଣାର ଶୋଲକାଠିକୁ
ଭାଂଗିପାରୁନି ଅନଭ୍ୟସ୍ତ ଧୂଳିମନ ମୋର ।

କଂଚା ସ୍ୱର୍ଗକୁ ଓଲଟ ପାଲଟ କରି ଦେଖିଲି
ସବୁକିଛି ସୀମାହୀନ ହୋଇପଡୁଛି
ତୁମମୟ ପୃଥିବୀରେ
ଜିଇଁବା କଷ୍ଟକର ଲାଗୁଛି ।

ଯଦିଚ ଅତି ସହଜ
ହେଲେ ଜମାରୁ ଗଢି ତ ପାରୁନି
ନିଜସ୍ୱ ଦୁର୍ଗ ।

ଚୂନା ହୋଇଯିବ କାଳେ
ମୋ କଳ୍ପନାରେ, ଯାହାକୁ
ପ୍ରୀତିର ପଲ୍ଲବିତ ପତ୍ରରେ
ସଯତ୍ନେ ଗଢ଼ିଛି ।

ଫଗୁଣ ଛୁଇଁଛି, ବର୍ଷା ବି ଛୁଇଁଛି
ଉପରେ କଳାମେଘର ସାମିଆନା
ଏସବୁକୁ ଏମିତିରେ ଭାଂଗିଦେବା
କଷ୍ଟ ହେଉଛି,
ସତରେ ଖୁବ୍ କଷ୍ଟ ହେଉଛି ।

ମୋ ନିଷ୍ପାପପଣକୁ
ଏମିତି ଛୁଇଁବାର ନଥିଲା,
ତୁମ ପାରିଲାପଣକୁ
ଏମିତି ଲଦିଦେବାର ନଥିଲା,
ଏକାବେଳକେ ସଂଭାଳିବ କେମିତି
ଏତେସବୁ ନୂଆ ଅନୁଭବ
ଅନୂଢ଼ାଦେହ,
ନୂଆ ଦରଦ ଜାଣି ନଥିବା ମନ ?

ମୁକ୍ତି ଉଦ୍ଦେଶ୍ୟରେ ଯୋଡ଼ି ହୋଇଯାଏ
ଏମିତି ଏକୁଟିଆପଣ ।

ମେଲା ଆକାଶର
ଭିଜା ମେଘପରି
ଛୁଇଁଗଲ କି ଏକ ଅନିର୍ବଚନୀୟତାରେ
ମୋର ତମାମ ଗୋପନୀୟତାକୁ
ସେହି ଶୀତୁଆ ସକାଳେ ।

## ତିନି

ଏଇ ସକାଳକୁ ମୋର
ଖୁବ ଭୟ ଥିଲା ।
ଏଣୁ ସକାଳ ନ ଆସୁ ଆଉ
ପ୍ରାର୍ଥନାରେ
ଅଧେ ରାତି ବିତି ସାରିଥିଲା ।
ଆଉ ବାକି ରାତି କାତରରେ,
ନିଦହଜା ଆଖିରେ ।
ହେଲେ କ'ଣ ସକାଳ ଶୁଣୁଥିଲା ଏସବୁ
ଉତ୍ତାଳ ମୁଦ୍ରାରେ ଆସିଲା
ଯେମିତି କି କୂଳମୁହାଁ ସମୁଦ୍ର !

ରାତି ପରେ ବି ଅଂଧାର ଟିକେ ଥାଏ
ସ୍ୱପ୍ନ ପରେ ସ୍ୱପ୍ନ କିଛି ଥାଏ
ଅତଏବ,
ମୁମୂର୍ଷୁ ମୁହୂର୍ତ୍ତକୁ ମୋର
ଆଲୋକିତ ଜୀବନ୍ୟାସ ଦେଇ
ପହଂଚିଗଲ ତୁମେ
ଭୟ ଓ କାଂକ୍ଷିତ ସକାଳ ।

## ଚାରି

ଆଜିକାଲି  ସବୁ ସକାଳ
ଏମିତି  ଆବେଗରେ
ଆବୋରି  ଧରେ  ବୋଲି
ଖରା, ବର୍ଷା, ଶୀତ
ସବୁକିଛି  ଲାଗୁଛି  ନିଜର ।

ବହଳ  ରାତିରେ  ଛାତିତଳୁ
ଉଠୁଥିବା  ଦରଜ  ଭାରି  ଲାଗେ,
ଆଉଟୁପାଉଟୁ  କରେ
ହଂତସଂତ  କରେ ।

## ପାଂଚ

ସେଦିନ ସକାଳର ଆସକ୍ତିକୁ
ଏମିତି ଛୁଇଁଦେଲ ଯେ
ଏଥର ସବୁ ସକାଳ
ଛାତିରେ ଶୀତ ଆଉ ଶୀତ ।
ଏତେ ବେଶୀ  ଶୀତଳତାକୁ
ଛୁଇଁ ନଥିବା
କଅଁଳ ଛାତି ମୋର
ଆଜିକାଲି
ତୁମକୁ ହିଁ ଲୋଡୁଛି ।

## ଛଅ

ତୁମକୁ ଖୋଜୁ ଖୋଜୁ
ନୟାଂତ ଶରୀରକୁ ମୋର
ଆଶ୍ରା ଦେଲା ଝଡିପୋକ ।

ସକାଳ ହେବାକୁ ତ ଡେରି ନାହିଁ
ଏ ଆଶ୍ରୟ କେତେ କାଳ ?

## ସାତ

ତୁମକୁ ଖୋଜିବା
ସମୟ ସହ ବଢ଼ି ବଢ଼ି ଚାଲେ
ତେବେ କି ତୁମକୁ ଖୋଜିବା
ଶେଷ ହୋଇଯାଏ !

ତୁମକୁ ପାଇବା ଅର୍ଥ
ମାଟିକୁ ଛାଡ଼ିବା
ଗୋଟିଏ ଜନ୍ମର ସବୁ ବଂଧନକୁ
ଆଡ଼େଇ ଦେବା ।

ଆଉ ତୁମକୁ ଖୋଜିବା
ଖୋଜି ହେବା, ଖୋଜିବାରେ
ବିଭୀଷିକା ପାଲଟିଯିବା ।
ଯାହାକୁ ଭେଟିଛି ତାକୁ ପଚାରିଛି
ଠିକଣା ତୁମର
ତୁମର ଠିକଣା ଜାଣିବା କ'ଣ
ନିହାତି ଦର୍କାର ( ? )
ଅଥଚ ଦେଖ
କେଉଁକାଳୁ ତୁମେ ହିଁ ତ ଅଛ
ମୋ ଭିତରେ ଧ୍ୟାନସ୍ଥ, ଆତ୍ମସ୍ଥ
ଯୁଗଯୁଗ, କାଳକାଳ, କଳ୍ପାଂତ ସମୟ
ମୂହୁର୍ତ୍ତି ପ୍ରତି ମୁହୂର୍ତ୍ତରେ
ତୁମେ ଆଉ ତୁମେ
କେବଳ ତୁମମୟ ।

# ଆଠ

ତୁମ ପ୍ରଖର ଉଷ୍ମତାରେ
ତରଳି ଯାଇନି ବୋଲି
ଏତେ କଷ୍ଟ କାହିଁକି ?

ଅଥଚ ତୁମ ଶୀତଳ ସ୍ପର୍ଶରେ
ସାରା ଅସ୍ତିତ୍ୱରେ ବିଜୁଳି ସଂଘାତ
ଛାତିରୁ ବୋତାମ ଖୋଲିଯାଏ
ଭାବ ହୁଏ ମହାଭାବ
ନାଭି ତଳର ଦରଦ କମି କମିଯାଏ
ତୁମ ସହ ପ୍ରୀତି ମୂଲାଇବା ବେଳେ ।

ଏଣୁ ତ ବାସନାର ଏହି ବହିଷ୍କାର
ଦେହରୁ ମଳିପାଣି ଫିଙ୍ଗା ପରି
ପ୍ରୀତି ଛୁଏଁ,
ସାମାନ୍ୟ ଆନମନା କରେ
ଓଠର ଗଭୀର ସମୁଦ୍ରରେ
ମନ ସମୁଦ୍ରେଇ ଯାଏ ।

ହେଲେ ତୁମର ସୁରଭିତ ବିଭୂତିରେ
ଆନ୍ଦୋଳିତ ହୃଦୟ ମୋ
ପୂରି ପୂରି ଯାଏ ।

# ନଅ

ସୁରଭିତ ବିଭୂତି ମଥାରେ ଲାଗିଲେ
ସବୁ ତୁଚ୍ଛ ହେଇଯାଏ
ତଥାପି ନିର୍ଦ୍ଦୟ ସମୟ,
ଆଘାତ କରେ ଛାତିରେ
ଆଉ ଛାତିରେ ।

ମୋ ଫେରିବା ନଫେରିବା ଉର୍ଦ୍ଧ୍ୱରେ
ତୁମେ ବିଚାରୁଥିଲ...

କିଂତୁ
ହରରଂଗୀ ପକ୍ଷୀଟିଏ ସାଜି
ବାହୁଡ଼ିବା ହୁଏ
ପୁନଶ୍ଚ ହନ୍ତୀଟିଏ ସାଜି ଘୂରିବା ହୁଏ
ଏହି କ୍ୟାନ୍‌ଭାସ୍‌ର ଘରେ ।
ତୁମ ସ୍ନିଗ୍ଧ ପ୍ରେମ
ବେଳ ଅବେଳରେ
ଆନମନା କଲେ ବି
ବିରୋଧ କରୁଥାଏ
ବାସ୍ତବତାର ନିଷ୍ଠୁର ଦେହଳୀ ।

ଅତଏବ,
ତୁମମୟ ପୃଥିବୀକୁ
ଆଉ ଫେରିବାର ନାହିଁ;
ଲଟପଟ ହେବାକୁ,
ସଂବାଲୁଆ ହେବାକୁ
ଜିଆଟିଏ ହେବାକୁ ।

## ଦଶ

ଏମିତି ଅଚାନକ ଆସିବାର
କି ଦରକାର ଥିଲା ?
ସାରା ଅସ୍ତିତ୍ୱକୁ ଏତେ ସହଜରେ
ଓଲଟପାଲଟ କରିବାର ନଥିଲା ।
ଜୀବନ ତ ଜିଉଁଥିଲି
ଯେମିତି ସେମିତି
ଟୋପାଏ ବିଷ କି ପୀଉଷ
ଗୋଳିବାର ନଥିଲା ।

ଯାହା'ତ ଫେଂଟିଫାଂଟି ନିଜସ୍ୱ ଭଙ୍ଗୀରେ
ଯାକିଯୁକି ଅନ୍ୟମନସ୍କତାରେ
ସଂଚିଥିଲି ଜୀବନକୁ ମୋର ।
ଯେତେ ପାରିଲାପଣରେ
ମନକୁ ମନାଉଛି
ମନ କି ମାନିଯାଏ ?

ଭାରି ଅଝଟିଆ
ଅମାନିଆ ଶାରୀଛୁଆଟିଏ ।
ଜିଦ୍ କରନା ବୋଲି ଯେତେ କହିଲେ ବି'
ଛାଟିପିଟି ହୁଏ ।

ତୁମ ଛୁଆଁ ବିଭ୍ରାଂତ କରିଦେବ,
ସାରାଟା ସତ୍ତାକୁ ଦୋହଲାଇଦେବ
ନୂଆ ଦରଦଟେ ଧିରି କି ଦେଇଯିବ
ଆଦୌ ଭାବି ହିଁ ନଥିଲି
ମାର୍ଚ୍ଚର ଏ ମାର୍ଜ୍ଜିତ ସକାଳେ ।

ଏହି ସକାଳର ବିଭୂତି
ଯଦିଚ ମଥାରେ
ଦିକ୍ ଦିକ୍ କରେ
ହୃଦତଳ କଂପନ ବଢାଏ,
ତେବେ କି ନିଦ ଅପସରିଯାଏ ?

ସକାଳ ପୁଣି ଆସିଯାଏ
ତୁମ ନମ୍ର ଅଥଚ ଉତ୍ତେଜନାର
ସବୁଜ ଛୁଆଁରେ ।

# ଏଗାର

ତୁମେ ମୋତେ ଛୁଇଁବା ପୂର୍ବରୁ
କେତେ ଚରିତ୍ର ଆସିଲେ ଗଲେ
ଛଦ୍ମନାମ, ଛଦ୍ମବେଶରେ
ମୋ ଯିବା ରାସ୍ତାରେ
ଆଗ ପଛ ହେଲେ ।

ଛୁଇଁଲାନି କାହାର ବେଶ,
ଆନମନା କଲାନି କା'ନାମ
ଖାଲି ଆସିଲେ ଆଉ ଗଲେ
ନିଜ ନିଜ ପାରିଲାପଣକୁ
ଲଦି ଦେଉଥିଲେ ।
ଅକୃତଜ୍ଞ ସମୟ ସହ ଖେଳିଲେ
ଲୁଚଲୁଚାଣି
ଖେଳ ସରୁ ନସରୁଣୁ
ଛାତି ତଳେ ତୁମ ମୁହଁ
ତୁମେ ଆଉ ତୁମ ଦୃଶ୍ୟରେ
ମୁଁ ମୋର ଆନମନା ହୁଏ ।

ପାରିଲେନି କେହି ଚହଲାଇ
ନଈପଠାରୁ ଫିଙ୍ଗି ଗୋଡି
ଅସ୍ଥିର ହେଇନି ଜମାରୁ ମୋର କିଛି ।

# ବାର

ଭୁଲିଯାଇଥିବା ଶବ୍ଦମାନେ
କ୍ରମଶଃ ବାହୁଡ଼ିଲେ,
ଶୂନ୍ୟପରିଧିରେ ସମାହିତ ହୋଇ
ଆଂଦୋଳିତ ହେଲେ ।

ଜୀବନ ସରିବା ଆଗରୁ
ଶବ୍‌ଦର ନୀଳାଭ ସ୍ପର୍ଶ ଦେଲା ଯେ,
ଆଉ ଶେଷ ହେବନି ଜମାରୁ ।

ଏବେ ଚାରିଆଡ଼ ସବୁଜ ।

ଅତଏବ, ଝରାପତ୍ରର ନିଷ୍ଠୁର ମର୍ମର କି
ସମୟର ଶାଣିତ ସ୍ପଂଦନ
ମୋତେ ଆଉ ଡରାଉନି ।

# ଡେର

ତୁମ ସହ ପ୍ରଥମ ଦେଖାରେ
ଭୟମିଶା ଲାଜରେ ଭର୍ତ୍ତି ଥିଲା ଆଖି
ଏଣୁ ତ ଝାପ୍‌ସା ଦୂରତାରେ
ଯାହା ତୁମକୁ ଯାଉଥିଲି ଦେଖି
ତୁମକୁ ସାମ୍‌ନା କରିବା
ନ'କରିବା ଦ୍ୱଂଦ୍ୱରେ ।

ଏତେ ବେଳକୁ  ଦେଖିନେଲି
ଛପିଲା ପଣ,
ଲାଜ ଆଉ ଲାଜରେ
ମୋ ସଂଦିଗ୍ଧ ଭୟ ।
ପୁଣି ସଂକୁଚିତ ହେବା ପୂର୍ବରୁ
ମୋ ପରିଧିରେ ତୁମ ପାଦଚିହ୍ନ
ମୋ ଆଖିରେ ଆଖିଏ ସପନ ।

ମୋ ସ୍ୱପ୍ନର ଶାବକ
ଏଯାଏଁ ସ୍ୱୟଂପୂର୍ଣ୍ଣ ଉଡାଣ ଶିଖିନି
କଥା ଦିଅ
ଏ ସ୍ୱପ୍ନକୁ କେବଳ ସ୍ୱପ୍ନଟିଏ କରି
ମହାଶୂନ୍ୟେ ଚିରକାଳ ପାଇଁ ସମାଧି ଦେବନି ?

# ଚଉଦ

ଭୟତକ ଅପସରି ଯିବା ପରେ
ତୁମ ମୋ ମଝିରେ ପ୍ରବାହିତ ପବନ
ଗୋପନତା ଖୋଲେ
ଆଉ ଏକ ପରିଧିରେ,
ତେଣୁ ତ ସେହିକ୍ଷଣି
ହାତରେ, ପାଦରେ
ଆଉ ମୋ ଓଠ ନୀଳସମୁଦ୍ରରେ
ତୁମେ ହୁଅ ବିଭୋର ବିଚିତ୍ର ମାୟାରେ !

ଅଚାନକ
ଭୟଶୂନ୍ୟ ଭିନ୍ନ ଇଲାକାରେ,
ଯୋଡିହୋଇ ଯାଉଥିଲି
ଅସୀମ ସୁନୀଳ ସ୍ପର୍ଶରେ ।
ଜୀବନ ମରୁ ହେବାକୁ ଡେରି
ହେଲେ ତୁମକୁ ଖୋଜିବା
କି ନିତାନ୍ତ ଜରୁରି ?

ଜୀବନକୁ ଖୋଜୁଖୋଜୁ
ସବୁଜ ଅନ୍ୟମନସ୍କତାର
ସେ କେଉଁ ଦୁର୍ବଳ ମୁହୂର୍ତ୍ତରେ
ତୁମ ସ୍ୱପ୍ନରେ ଓ ଛାତିରେ... ।

# ପନ୍ଦର

ତୁମଠାରୁ ଛିଣ୍ଡିପଡୁଥିବା
ଆତ୍ମୀୟତାର ସବୁଜପତ୍ରମାନେ
ଅନ୍ୟମନସ୍କତାରେ ଲୁହ ନିଗାଡୁଥିଲେ
ପୋଛୁଥିଲେ,
ଆଉ ଦୂରକୁ ଦୂର ଫେରିଯାଉଥିଲେ ।

କଅଁଳ ମନ ଆଉ ଛାତିକୁ
ପଥର କରି ଗୀତ ବୋଲୁଥିଲେ,
ବୁଲିଯାଉଥିଲେ...
ଅସ୍ୱସ୍ତିରେ ଉଚ୍ଛୁଳି
ଯେମିତି ଭାରି ମନକୁ
ହାଲ୍‌କା କରୁଥିଲେ ।
ସେହି ସକାଳକୁ ନିଷ୍ଠୁର କହି
ନିଜେ ନିଜକୁ ପ୍ରତାରିତ କରି
ଏମିତି ସକାଳ ଆଉ ନଆସୁ କହି
ଈଶ୍ୱରଂକ ଉଦ୍ଦେଶ୍ୟରେ
ହାତ ଯୋଡୁଥିଲେ ।

# କୋହଲ

କେତେଥର ତୁମ ନାମ ଶୁଣିଛି
ସେମାନଂକ ତୁଂଡରେ ।

ଭାସିଯାଉଥିବା ମନମାନେ
ଶେଷରେ ତୁମ କୂଳରେ ଲାଗିଲେ,
ଭୟଂକର ଯୁଦ୍ଧରୁ ଓହରିଲେ
ଅଭିଧାନ ପୃଷ୍ଠାପରି
ଶବ୍‌ଦଟିଏ ବାଛିନେଇ
ତୁମମୁହାଁ ହେଲେ ।

ତୁମ ସହ ଏକାତ୍ମ ହେବାର
ଅନିବାର୍ଯ୍ୟ ଅଭିଳାଷ ସଂଚି
ଯୁଗ ଯୁଗ କାଳ କାଳ
ତପସ୍ୟାରେ ମଗ୍ନ ରହି
ଜୀବନ ଜିଇଲେ ।

କେତେଥର ତୁମ ନାମ ଶୁଣିଛି
ସେମାନଂକ ତୁଂଡରେ...
ସ୍ୱପ୍ନ ପରି ଖୁଂଜିଛି ତୁମକୁ ଆଖିରେ
ଅଂଡାଳିଛି ଛାତିରେ, ନାଭିରେ
ଏଣୁ ତ ପ୍ରତିନିୟତ
ନିଜେଇ ନିଜ ଭିତରେ ଖୋଜୁଛି
କେବଳ ତୁମକୁ,
ଜାଗରୁକ ରଖିଛି ଅତୀତମାନଂକୁ
ଏକାତ୍ମ ହେବାକୁ
ତୁମମୟ ପୃଥିବୀରେ ।

ଯଦିଓ ପୂର୍ବରୁ
କେତେଥର ତୁମନାମ ଶୁଣିଛି
ସେମାନଂକ ତୁଂଡରେ ।

# ସତର

ତୁମେ ସିନା ଏକା କରିଗଲ
ହେଲେ ମୁଁ ଏକା ହୋଇପାରିଲି କି ?

ମୋ ଏକଲାପଣକୁ ଖୋଲି ତ ନଥିଲି;
ତୁମେ କେମିତି ଯୋଡିଯାଡି ଝାଡିଝୁଡି
ତୟାର ହୋଇଗଲ
ମୋ ଶୁଖିଲାପଣକୁ ଓଦା କରିବ...
ଓଦା ମାଟିର ବାସ୍ନାରେ
ମୋତେ ବିଭୋର କରିବ ।

ଏତେ କାଳ ପରେ ବି
ତୁମ ଦେହରେ ସବୁଜ
ଏ ବିଜୁଳି ସଂଘାତ ?
ଭେଦିଯାଏ ଅଗ୍ନି
ଚୂନା ହୁଏ ହାଡ
ମଂତ୍ରମୁଗ୍ଧ ରକ୍ତମାଂସ ଦେହ
ସମୁଦ୍ର ପଠାରୁ ତୁହାକୁ ତୁହା
ଫେରିଆସେ ଝଡ ।

ଦେଖୁନ ଦୁଲୁକି ଉଠୁଥିବା ମନ
କେମିତି ଏକାଏକା ଜହ୍ନ ସହ ଖେଳୁଛି
ତୁମେ ସିନା ଏକା କରିଗଲ
ହେଲେ ମୁଁ କ'ଣ ଏକା ହୋଇଛି କି ?

ଶବ୍ଦ-ହୀନ ଆକାଶ ତଳେ
ମାଟି ଦେଇଛି ଆଶ୍ରୟ
ଏମିତି ଏକଲା ପଣରେ ବି
ଏକା ହୋଇପାରେନା
ତୁମେ ଥାଅ ପାଶେ ବୋଲି
ଦେଖ, ଆଜି ତୁମେ ନଥାଇ ବି
କେମିତି ଆହ୍ଲାଦରେ ବଂଚୁଛି ।

ବଂଚିବାର ପ୍ରବଂଚନାରେ
ତୁମକୁ ସାଉଁଟି ସାଉଁଟି
ପ୍ରତି ଜହ୍ନରାତିରେ,
ଶୋଷରେ,
ସକାଳର ସୂର୍ଯ୍ୟକୁ ଖୋଜୁଛି ...
ତୁମେ ସିନା ଏକା କରିଗଲ
ହେଲେ ସତରେ
ମୁଁ କଣ ଏକେଲା ହୋଇଛି ?

# ଅଠର

ଆଜିକାଲି ଝଲମଲ ଦିଶ
ମୋ ଭିତରେ ବାହାରେ
ଯେମିତି ନଈପାଣି
ଜହ୍ନର ଜ୍ୟୋସ୍ନାରେ ।

ଦୁଃସମୟର ସାମ୍ନା ହେବା ଚିଂତା
ସତରେ କେତେ ବୋକାପଣ,
ଛୁଇଁସାରିଛ ତ,
ମୋ ତମାମ୍ ଇଲାକାକୁ
ବାର୍ଦ୍ଧକ୍ୟ କି ଆସିପାରେ
ତୁମ ନାମ ଲେଖାଥିବା ଯାଏଁ ।
କେତେ କଥା ସାଇତାଥିଲା
ତୁମ ଉଦ୍ଦେଶ୍ୟରେ,
ଯାହା ଥିଲା କହିବାକୁ ବାକି
ତୁମେଇ ତ କହିଗଲ
ନିଶୂନ୍ ଶବ୍ଦରେ ।

ନିରୁତା ହୃଦୟ ମୋ
ଜପୁଥିଲା ନାମଟିଏ
ଆଉ ଲୁଚିବା ହୁଏ
ନିଜେ ନିଜ ଭିତରେ ।

ମଂତ୍ରମୁଗ୍ଧ ସମୟ ବାଂଧିଦେଲା ମୋତେ
ତୁମମୟ ନିଚୋଳ ପରିଧିରେ ।

# ଊଣେଇଶ

ଇଚ୍ଛାମାନେ ଆଗରେ ପଛରେ ହେଲେ
ଛାତିକୁ ଚିରିଲେ,
ଖୋଲା ପାପୁଲି ମଝିରେ
ଛନ୍ଦି ହେଇଗଲେ
ଜୀବନକୁ ଅଂଡାଳିବା ପରେ
ଦେହ ମୋର
ଲାଜେଇ ଯାଉଥାଏ
ପଦ୍ମକୋରକ ଛଳରେ ।

ସମୁଦ୍ର ଲହଡି କି ଇଏ ?
ଭାଂଗୁଥାଏ ବାରବାର ଏପାଖରୁ ସେପାଖ
ସେପାଖରୁ ଏପାଖ,
ଆଗରୁ ପଛ ତ କେବେ ପଛରୁ ଆଗ ।

ଘର୍ମାକ୍ତ ଶରୀର
କ୍ରମଶଃ, ସ୍ଥିର ହୁଏ
ଗୋଟେ ଶାଶ୍ୱତ ସଂବେଦନାରେ ।
ଧୀରେ କି ବହିଯାଏ ମେଘହୀନ ଆକାଶରୁ
ଶୀତଳ ପବନ,
ଆଉ ଛୁଇଁଯାଏ ସାରା ଶରୀର
ଅତି ସଂତର୍ପଣେ ସେତେବେଳେ
ମୋ ଭିତରେ ତୁମେ ଲୁଚି ସାରିଥିଲ
ସାରା ଦେହକୁ
ବିଦେହରେ ପରିଣତ କଲ ।

# କୋଡିଏ

ଇଚ୍ଛାମାନେ ଅପସରି ଯିବା ପରେ
ଛୁଇଁ ହେଇଯାଏ ଏତେକାଳ
ସଂଚିଥିବା ତୁମର ସେ ଛ୍ଣାନ
ଏବଂ ତୁମ ପୃଥିବୀରେ ମିଶିବା ଉତ୍ତେଜନା
ଦୃଢୀଭୂତ ହୁଏ
ଏଣୁ ତ ଅଚାନକ
ବର୍ଷିଗଲା ସକାଳ
ଘର୍ମାକ୍ତ ଶରୀର ସତେଜ ହେଇ ଆସିଲା
ଦେହର ଉପକଣ୍ଠରେ
କୋଇଲିର ଲକ୍ଷେ କୁହୁ ଶୁଭିଲା ।

ମିଛିମିଛିକା ଖେଳ
ସତ୍ୟର ସଂଭାବନା ରଖିଲା,
ସକାଳ କେମିତି କେଜାଣି
ଅଂଧାରକୁ ଆମଂତ୍ରଣ କରିନେଲା ।
ବାସ୍ ସେଇ କିଛି ମୁହୂର୍ତ୍ତ
ହୃଦୟର ଗହୀରିକୁ ଏମିତି
ଛୁଇଁଗଲା ଯେ,
ପାସୋରି ହେଉନି ସକାଳକୁ ଆଉ ।

ବାଷ୍ପୀଭୂତ ଉଦ୍‌ବେଗ ଏବେ
ସାରା ଦେହରେ ସଂଚରିତ,
କେମିତି ସଂଭାଳିବି କହ
କେଉଁଠି ସାଇତି ରଖିବି
ଏମିତି ଅନାୟାସରେ
ଛୁଇଁଦେଲ ଯେ !
ସକାଳଟା ପାସୋରି ହେଉନି ଜମାରୁ ।

ଏମିତି ଏକ ମୁହୂର୍ତ୍ତ
ଯାହାକୁ ଆମନ୍ତ୍ରଣ କି ତିରସ୍କାର
କରିବା ଊର୍ଦ୍ଧ୍ୱରେ
ଅଚାନକ ବର୍ଷିଯାଏ,
ଶୀତ୍କାର ଖେଳିଯାଏ
ବୟସର ଏହି କଅଁଳ ସକାଳେ ।

# ଏକୋଇଶ

ହୁଲିଡଂଗା ଭସାଉ ଭସାଉ
ମୁଁ କଣ ଜାଣିଥିଲି
ହୃଦୟ ଭାସିବ, ଅଂଧାର କି ଆଲୋକ
ଏମିତି ଏକ ଦ୍ୱନ୍ଦ୍ୱରେ ତୁମକୁ
ଖୋଜି ହେଉଥିବି ।

ସେ ଦିନ ସକାଳର ନୀଳ ନାବିକ
ଏବେ କୁହ କେଉଁବାଟେ ନାଆ ବୁହାଇବ ?
ଏତେ ଦିନ ଧରି କେହି ଶୁଣିନଥିବା
ଡାକକୁ ମୋର ଶୁଣିଛ ବୋଲି,
ମହାନିଦ୍ରାରୁ ଉଠିଛ ବୋଲି,
ତମାମ ଯୌବନ ମୋର
ସଅଁପି ଦେଲି
ତୁମର ପ୍ରଶସ୍ତ
ଆଲିଂଗନର ଆକାଶରେ ।

ମନ ତଳେ ଆଂକି ହୁଏ
କଦଂବର ବଳୟ
ଯେଉଁଠି ତଲ୍ଲୀନ ମୁଁ
ଏବଂ
ମୋ ଭିତରେ ବାହାରେ
ତୁମେ ନୀଳମୟ ।

ତୁମଠାରୁ ଭାସିଆସୁଥିବା ବଂଶୀସ୍ୱର
ଉଜାଗର କରୁଥିଲା
ମୋ ଅଂତଃକରଣକୁ
ଯେଉଁଠି ନିଜେଇ ରୂପଟିଏ ଦେଉଥିଲି
ସ୍ୱପ୍ନିଳ ପ୍ରତ୍ୟୟର ସାକାର ପ୍ରତିମାକୁ ।
ଯାହାକୁ ଆନନ୍ଦ ଭାବି
ଏତେ କାଳ ହୁଏ
ଲୁଚଲୁଚାଣି
ଆଉ ବେଳ ଅବେଳରେ
ବାଟବଣାର ସଂଭାବନା !

ଜାଣେ,
ଏସବୁ ଆଦୌ ନୁହଁ ଶେଷତମ
ଅତଏବ ଏବେ ମୋ ହୁଲିଡଂଗାର
ଭସାଣି ପର୍ବରେ, ତୁମେ ହିଁ ମୋ ଲୋଡା,
ମୋର ଶେଷତମ ଓ ଏକକ ନାବିକ ।

## ବାଇଶ

ଆଜିକାଲି ସ୍ୱପ୍ନସାରା ତୁମେ
ଅତଏବ,
ରାତିସାରା ସ୍ୱପ୍ନରେ ଖୋଜିବା ପରେ
ମାଛିଅଂଧାରରେ ଭେଟେ,
କଥା କୁହେ,
ଲଜ୍ଜାରୁଣ ହସର ଛଳରେ
ତୁମ ଭିତରେ ସମାହିତ ହୁଏ ।

ଅଚଳ ସ୍ନାୟୁ ତମାମ
ଚିରଚଂଚଳ ହେବା ପରେ
ନିଦ ଭାଂଗେ, ଆଖି ଖୋଲେ
ଏତେ ସବୁ ଆଲୋକ କେଉଁଠି ଥିଲା
ସତେକି ରାତି ପାହି ନଥିଲା ।

# ତେଇଶ

ତମ ସହ ସଂପର୍କ ଯୋଡିବା ଆଗରୁ
ପ୍ରତିବାଦିତ ସ୍ୱରକୁ ମୋ'
ବଦଳେଇଦେଲେ ବାଂଧବୀମାନେ
ନିଜସ୍ୱ ଭଂଗୀରେ,
ଯୋଡିଯାଡି କରି ତୁମ ସହ
ଏକାକାର କଲେ ।

ନିତି ପଚାରୁଥିଲେ
ତୁମ ମୋ ଭାବ ପ୍ରୀତି କଥା,
ଲାଜରେ ମୋ ଦେହରେ
ନୀରବତା,
ଶିହରଣ ଆଉ ମିଠା ମିଠା ତୁମାର କବିତା ।

ଧୀରେ ଧୀରେ ଭିତରକୁ ଭିତର
ଭେଦୁଥିବା ତୁମ ଭାବ
କେଜାଣି କେତେକାଳ ଜିଇଁବାକୁ ଦେବ
ମୁଁ ଜାଣେନା, ଜାଣିବାକୁ ଚାହେଁନା ।

ଜାଣେ କିଂତୁ ଏ ଦେହ, ଏ ଆୟୁଷ
ଏତେ ସବୁ ସ୍ମୃତି ଦିନେ
ସରି ସରି ଯିବ ।

## ଚବିଶ

ଠିକ୍ ଜାଣେ,
ଏବେ ତୁମେ ଆସ
ମୋ ବସିଥିବା ନିକାଂଚନତାକୁ,
ଆଖିରେ ହାତ ଥାପି ଲୁଚିଯାଅ
କାନରେ ହାତ ଗୁଂଜି
କୁତୁକୁତୁ କର
ଓଠକୁ ଲଦି ଦେଇଯାଅ
ଓଠର ପାଖୁଡ଼ାରେ ।
ସେଇ ସକାଳର ସ୍ମୃତି ସଂଚରଣ
କେତେ କେତେ ଶବ୍ଦ ଗଢେ
ତୁମ ଉଦ୍ଦେଶ୍ୟରେ
ଛାତି ମୋର ଉଠେ ଆଉ ପଡେ
ସ୍ୱପ୍ନ ଖଂଜେ, ମିଳେଇ ବି ଯାଏ
ଆଖି ମିଟିକାରେ,
ଆଉ ଖୋଜି ହୁଏ ଦୃଶ୍ୟ ଅଦୃଶ୍ୟରେ ।

ମୁଁ ଠିକ୍ ଜାଣେ ଏବେ
ତୁମେ ଆସ ମୋ ବସିଥିବା ନିକାଂଚନତାକୁ
ସ୍ୱପ୍ନମୟ ସ୍ମୃତି ଲହରରେ ।

# ପଚିଶ

ଦେଖ, ରାତିମାନଙ୍କୁ ସଭିଁଏ
ସାଉଁଟିବାବେଳେ
ମୋତେ କିନ୍ତୁ ଏ ସକାଳ ଭାରି ଭଲ ଲାଗେ,
ଏଣୁ ତ ପ୍ରତି ସକାଳର ସୂର୍ଯ୍ୟ
ଅନ୍ୟ ସକାଳଠାରୁ କିଛି ନୂଆ ଲାଗେ ।

ରାତିର ଅଂଧାରକୁ ସଭିଁଏ
ଭାଗ ବଂଟା କଲା ପରେ
ମୋ ଉଦ୍ଦେଶ୍ୟରେ
ନୂଆ ସୂର୍ଯ୍ୟ ଉଇଁ ଆସେ ।
ରାତିସାରା ଏତେ ଲୁଚକାଳି ଖେଳିବା ପରେ
ଆଉ କ'ଣ ବା ବାକି ଥାଏ ସକାଳକୁ ?

ତୁମ ପ୍ରଶସ୍ତ ଭୂମାରେ ମଥା ରଖି
ଅତୀତକୁ ପଛ କଲା ପରେ
ଭବିଷ୍ୟତ ବି ଛୁଏଁନା ଜମାରୁ
ଏଣୁ ତ, ଏ ମୁହୂର୍ତ୍ତ ସବୁବେଳେ ମନେପଡେ ।

ଆଉ କି ଆସିବ ଏବେଳ ?
ସକାଳର ନଈରେ ଖେଳିବାକୁ ଖେଳ
ଫେରି ଫେରି ଯାଉଥିବା ଗଭୀର ନଈକୁ
ଫେନିଳ ବର୍ଣ୍ଣାକ୍ଷର ସାଉଁଟିବାକୁ ।

ଦେଖ ରାତିମାନଂକୁ ସଭିଁଏ
ସାଉଁଟିବାବେଳେ
ମୋତେ କିଂତୁ ଏ ସକାଳ ଭାରି ଭଲ ଲାଗେ ।

# ଛବିଶ

ଯେତେ ଏ ସକାଳ ବଢ଼ି ବଢ଼ି ଚାଲେ
ବିଦାୟ ମୁହୂର୍ତ୍ତ ନିକଟତର ହୁଏ;
ସୂର୍ଯ୍ୟ ଉଠେ ମଥାନ ଉପରକୁ
ଅପବାଦ ବି, ରାତି ଘୁମେଇ ଘୁମେଇ ଆସେ
ବୋଲି ଦିଏ ଯେତେସବୁ ଅସ୍ପଷ୍ଟ ଅଂଧାର ।

ସେଇ ଅସ୍ପଷ୍ଟତା ଭିତରୁ
ତୁମ ମୁହଁ ଦେଖାଯାଏ
ଆଉ ସକାଳକୁ ।
ଜାଣେ ତୁମ ସହ
ସକାଳ ଆସିବ ନିଶ୍ଚୟ,
ତଥାପି,
ମୁଁ ହୁଏନି ବିଚଳିତ
ଯଦିଓ, ଏ ରାତି ବଢ଼ି ଚାଲେ
ବିଦାୟ ମୁହୂର୍ତ୍ତ ନିକଟେଇ ଆସେ ।

# ସତେଇଶ

ରାତି ଏତେ ଖାସ୍ ନଥିଲା
ଏଣୁ ସକାଳକୁ ତୁମ ପ୍ରଶ୍ନର ଉତ୍ତରରେ
କିଛି କହିବାକୁ ନଥିଲା ଯେ,
ରାତି କେମିତି କଟିଲା ?

କେମିତି କହିବି ଯେ,
ତୁମେ ତ ଆଦୌ ଛୁଇଁ ନଥିଲ
ତମାମ ରାତି ମୋର
ନିଘଂଚ ଅଂଚଳ ।

ନିଜେ ନିଜେ ଜହ୍ନଆଲୁଅରେ
ସକାଳକୁ ଗଢୁଥିଲ
ତରଳି ଯାଉଥିଲ,
ସ୍ୱପ୍ନେଇ ହେଉଥିଲ
ଏଣୁ ତ
ଏପରି ପ୍ରଶ୍ନବାଣ
କରିଦିଏ ଚାରିଆଡ ମୌନ ।
ତୁମ ସହ ସଂପର୍କ ଗଢ଼ିବାରେ
ତଥାପି ବିଳଂବ ।

ସାରା ରାତି ଗଣିନି ଢେଉ କି
ବୋଇତରେ ଟାଣିନି ପାଲ
ଏଣୁ କୂଳକୁ ଲଂଘି ପାରିନି
ଝଡ କି ଜୁଆର ।

ହୃଦ ତଳେ ଆଂକି ପାରି ନଥିଲି
ସେଯାଏଁ ପ୍ରେମ ମାନଚିତ୍ର ।

ଶୁଣ ଏବେ–
କେମିତି କହିହେଇଥାଆନ୍ତା ଯେ'
ରାତି କେମିତି କଟିଲା ?

ତେବେ କି ଶଂକା ଥିଲା
ରାତି କେ ଆବୋରି ଥିଲା !

# ଅଠେଇଶ

ରାତିକୁ  ପଛ କରିଦେଲ
ଆଉ କେହି ଆବୋରିଛି ଭାବି  ।

ବାକି ଥିବା ପରମାୟୁରେ ମୋ
ସକାଳ ଚିତ୍ରିତ କଲ,
ଅଷ୍ଟମ ରଂଗ ଦେଖାଇଲ
ତୁମ ଛୁଇଁବା ନିବୁଜ ସଂତର୍ପଣରେ
ନିଜ ନାମ ଲେଖିଦେଲ
ମୋ ଆତ୍ମାର ସ୍ୱଚ୍ଛ ନିଟାଳରେ ।

କହ ଏବେ, କେମିତି ସାଉଁଟିବି
ଏତେ ବଡ ରାତିକୁ
ଯାହାକୁ ମୋର ବୋଲି କହିପାରୁ ନାହିଁ ।
ରାତିମାନେ ଦୀର୍ଘକାଳ ହେଇଆସଂତି
ଅଭିଶପ୍ତ କପୋତର କରୁଣ ବାହୁନାରେ ।

ବିରହର ଅଗ୍ନିଝୁଲ ଶୀତଳତା ପାଏ
ଆଉ ସକାଳରେ ।

ରାତିକୁ ପଛ କରିଦେଲନା  !

# ଅଣତିରିଶ

ତୁମେ ପରା ଥିଲ
ଲୁହ ପରି ସରଳ ନଈ
ଓ
ଆକାଶ ପରି ପ୍ରଶାଂତ ଗଂଭୀର
କାଗଜ ଡଂଗାକୁ ଅତୀତର ସ୍ରୋତରେ
ଖୋଜି ପାଇଲନି ବୋଲି
ଏତେ ଦୁଃଖ କାହିଁକି ?

ତୁମେ ହିଁ ତ ପାରି କରିବାକୁ
ଦେଇଥିଲ ଉଜେଇ ।

ଦେଖ,
ତୁମକୁ ଖୋଜୁ ଖୋଜୁ
ନିଜେ ପାଲଟି ଗଲିଣି
ଗୋଟେ କାଗଜଡଂଗା
ସୀମାଂତ ପାରିରେ
ସବୁ ମେଘ, ପବନ ଓ ବର୍ଷା
ତଳେ ଅସମତଳ ପଥର ସଂଧିରେ
ମୋର ଜକାଜକି ଅନ୍ୟମନସ୍କତାରେ ।

ମୁଁ ତୁମମୁହାଁ ହେଲାବେଳକୁ
ତୁମେ ନିସ୍ତରଂଗ ଶୂନ୍ୟତାରେ
ଉଡଂତା ପକ୍ଷୀଟିଏ କେମିତି ପାଲଟିଗଲ ?

## ତିରିଶ

ଦେଖୁନ, ମୁଁ କେମିତି ସାଉଁଟିଛି ତୁମକୁ
ମୋ ନରମ କୋଳରେ ।

କପାଳରେ ଆଂକୁଛି ନମ୍ର କୁଟିକମ,
ଆଉ ଚୁମ୍ବାର ପ୍ରାବଲ୍ୟ
ଖଂଜି ଦେଉଛି
ବାମ କଡ ମଥାନ ଉପରେ,
ଆଖିରେ କଜ୍ଜ୍ୱଳ ଲାଖି
ପାପୁଲିର ଉଷ୍ମ ସ୍ପର୍ଶ ଦେଇ
ମୁହଁ ଗୁଂଜି ଦେଉଛି
ଛାତିକୁ ମେଲି ।
ତମେ କି ଜାଣ ଜନନୀ
ହେବାକୁ ହେଲେ
ପ୍ରେମିକାକୁ ଛାଡି ଦେଇ ଆସିବା ହୁଏ
ସେ କେଉଁ ଏକ ଉପବନରେ ।

ଦେଖୁନ, ମୁଁ କେମିତି ସାଉଁଟିଛି
ତୁମକୁ କୋଳରେ !

ତୁମ ଅସୀମ ଜ୍ଞାନଭଂଡାରରେ
ମୂର୍ତ୍ତିଟିଏ ହୋଇ
ବସିଯାଏ ତୁମରି ସାମ୍ନାରେ
ଭାବ ବଦଳିଯାଏ ।

ତୁମ ଗଂଭୀର ଭାବର ତତ୍ତ୍ୱ
ଶୂନ୍ୟ ମସ୍ତିଷ୍କରେ ମୋର ପୂରି ପୂରି ଯାଏ ।

# ଏକତିରିଶ

ଅତଏବ,
ତୁମେ ସମୁଦ୍ର ମଝିରେ
ନୃତ୍ୟ କଲାବେଳେ
ଆଂକି ଦେଇଯାଏ
ତୁମ ଚିତ୍ର ସମୁଦ୍ରବାଲିରେ ।

ସମୁଦ୍ର ବୋଲି ହେଇଯାଏ
ମୁହଁରେ, ଦେହରେ...
ହେଲେ–
ଏତେ ଲୁଣିପାଣି ବି ମିଠାଲାଗେ
ତମେ ଯେହେତୁ ଥାଅ ସାମ୍ନାରେ ।

ତୁମ ନୃତ୍ୟର ଗାରିମାକୁ
ସାଉଁଟିବାବେଳେ
କଅଁଳ ସୂର୍ଯ୍ୟକିରଣ ପଠାରେ
ତୁମେ ହିଁ ତ ନୃତ୍ୟରତ
ମୋ ଆଖିର ପିତୁଳାରେ ।
କାହିଁକି ଯେ ଖାଲି ଦେଖିଲି ତୁମକୁ
ଅନ୍ୟମାନେ ପାଗଳର
ଅପବାଦ ଦେଲେ ।

ସେମାନେ ସବୁ ପାଗଳ କହି
ଯେତେ ଚିତ୍କାର କଲେ ବି
ଟେନାଏ ଶୋଚନା ନାହିଁ ମୋର ।

ଯେହେତୁ ତୁମକୁ ଏତେ ଜନ୍ମ ଧରି
ଖୋଜିବା ପରେ
ଭେଟିଛି, ସମୁଦ୍ର ମଝିରେ,
ଆଉ ଦେଖୁଛି
ନାଚିବା ମୋ ନେତ୍ର ମଂଡପରେ ।

ସେମାନେ କାହୁଁ ବୁଝିବେ
ଏ ସୂକ୍ଷ୍ମ ଭାବ ମୋର
ଅତଏବ ପାଗଳ କହି
ଯାହା ତିରସ୍କାର କଲେ,

ଏ' ତିରସ୍କାର
ମୋତେ ଖୁବ୍ ଭଲ ଲାଗେ
ତିରସ୍କାରରେ କ୍ଷତାକ୍ତ ହେଲା ପରେ
ମୁଁ ଜାଣେ,
ତୁମେ ଆସି ଉଦ୍ଧାରିବ ମୋତେ ।

## ବତିଶ

ବେଳେବେଳେ ଏମିତି ହୁଏ
ମୋତେ ନକହି ତୁମେ
ଜଗିଥିବ ଭିନ୍ନ ଇଲାକାରେ
ସବୁଜ ହୋଇ ଉଠିବ
ମନୋଜ୍ଞ ବେଳାରେ   ?

ଆଉ ମୁଁ ଅତୀତ ସ୍ମୃତିକୁ ସାଉଁଟି
ଆଂକୁଥିବି ଆଗକୁ ଆଗକୁ
ନୂଆ ପାଦଚିହ୍ନ ।

ଯେଉଁଠି ତମେ ଥିବ କି ନଥିବ
ଅଥଚ ମୁଁ ଖୋଜି ହେଉଥିବି,
କିଂତୁ,
ନଥିବ ସବୁଜ ଆବର୍ତ୍ତ
ତୋଳୁଥିବ ଭିନ୍ନ ଇଲାକାରେ ।

ସ୍ମୃତିମାନ ତୁମ
ଚିରଚଂଚଳ ମନର ଭୂକଂପରେ
ମିଶିଯାଉଥିବ
ମୋ ସଯତ୍ନେ ଗଢା ମାଟିର ଘର
ସଂଗଭୂକ୍ତ ହୋଇସାରିଥିବ ମାଟିରେ ।

# ତେତିଶ

ମାତ୍ର ଗୋଟିଏ ଚୁମ୍ବନ
ମନତଳେ ଆଁକିଦିଏ
ଜୀବନର ମାନଚିତ୍ର
ତା'ପରେ ମାଟି ଦିଏନା ଆଶ୍ରୟ ।

ଛାତିରୁ କ୍ଷରିତ ହୁଏ ଅମୃତ ।

ଚୁମ୍ବନ ମାନେ ନା ବାଧା କି ବନ୍ଧନ
କୁଟିଳ ସମୟର ରହସ୍ୟ ସ୍ପନ୍ଦନ ।

କେଉଁକାଳୁ ମହାକାଳର ଗର୍ଭରେ
ସାଇତାଥିଲା ଯେ,
ଏକାବେଳକେ ଏତେ ଅମୃତ ଝରେ ।
ବାକି ଥିଲା ବାତ୍ସଲ୍ୟ ପ୍ରୀତିର
ଶେଷ ସମ୍ବୋଧନ ।

କେମିତି ଅଚାନକ ବଦଳିଗଲା,
ଅନ୍ୟକେଉଁ ଉଦ୍ଦେଶ୍ୟରେ ହେଉ
କି ତୁମକୁ ନେଇ ଜିଉଁଥିବା
ଜୀବନରେ ହେଉ
ବାକି, ଡାକଟିଏ ହିଁ ବାକିଥିଲା.... ।

ଅସଜଡା ଜୀବନକୁ ମୋର
ସଜାଡିଦିଅ,
ନିଭୃତ ଅଂଧାରକୁ
ତୁମ ସୂକ୍ଷ୍ମ ଆଧିପତ୍ୟରେ
ଆଲୋକିତ କରିଦିଅ ।

# ଚଉତିରିଶ

ତମେ ଠିକ୍ ଜାଣ ରାତି ମୋ ପାଇଁ
ବିରହର ଜହର ପ୍ରପାତ ବୋଲି
ଜାଣି ଜାଣି ଖତେଇ ହୁଅ
ଜହ୍ନ ଆଢୁଆଳେ ରହି ।

ଜହ୍ନକୁ ଜମାରୁ ମୁଁ ଈର୍ଷା କରୁନାହିଁ
କାହିଁକିନା, ମୁଁ ଠିକ୍ ଜାଣେ
ଜହ୍ନ ଗଲା ପରେ ତୁମେ ହିଁ ଆସିବ
ସୂର୍ଯ୍ୟ ହୋଇ ।
ଅଂଧାରମୟ କଳେବରକୁ ମୋର
ସୁରଭିତ ଆଲୋକରେ ଭରିବ ।

ଆଦିମ ଅଂଧାରର
ଶୃଂଖଳରେ ଘେରା ଆବଦ୍ଧ ଜୀବନ
ଛିଂଡିଯାଉଥିବ,
ତୁମ ଆଲୋକରେ ସ୍ପର୍ଶରେ ।

ଆଉ ମୋ ହାତ ପାଦ
ଛଂଦି ହୋଇ ଯାଉଥିବ
ତୁମ ନିବିଡ ବେଷ୍ଟନୀରେ ।

# ପଂଚତିରିଶ

ପୁଣି ରାତି ଆସେ
ଲଂକା ଗଛ ତଳେ
ନିଆଁ ଜାଳିବାକୁ
ହାଡରେ ଖରା ଚରିବାକୁ
ହେଲେ କି ଚରିପାରେ !
ସକାଳ ତ ଛୁଇଁ ଯାଏ
ଠିକ୍ ସେହିବେଳେ
ଗହନ ଅଂଧାରେ
ମୁରୁଝିବାବେଳେ ।
ରାତିଯାକ କଥାମାନେ
ସ୍ମୃତିର ପୋଖରୀରେ
ପହଁରି ପହଁରି
ଚାରିଆଡେ ଖେଳିବା ପରେ
ଉଡିଯାଂତି ପକ୍ଷୀଟିଏ ହୋଇ ।

ରାତିର କଳା ଅଂଧାରରେ ଗୋଳି ହୋଇ
ସକାଳର ଚା' ପିଆଲାରେ ଗରମ ହୋଇ ।

ଆଉ କୁହ ଏଥର କି କଥା ରହିପାରେ
ଜୀବନ ପାଇସାରିବା ପରେ
ମୃତ୍ୟୁକୁ ପଛ କଲା ପରେ
ତୁମେ ମୋର ହେବା ପରେ... ।

# ଛତିଶ

ହେଲେ ବି ଖୋଜି ହୁଏ
ଏମିତି, ସବୁ ସକାଳକୁ ।

ଖୋଜୁଥାଏ ଗୋଧୂଳି ତୁଠରେ,
ଗାଈଗୋଠ ଧରି ଯାଉଥିବା
ଗାଈଆଳଂକ ଗହଣରେ,
ଉଦୀୟମାନ ସୂର୍ଯ୍ୟର ଆଭାରେ ,
ସଂଜଦୀପ ଚଉରା ମୂଳେ,
ବଂଶୀର ସ୍ୱରରେ...
ଏବଂ
ଏସବୁ ଭିତରେ ଅଚାନକ
ତୁମକୁ ହିଁ ପାଇଯାଏ ।
ତେଣୁ ତ ସକାଳ ମୋର
ଏତେ ପ୍ରିୟ ଏତେ ଆପଣାର ।

ସବୁ ସକାଳେ ତୁମେ ଆସ
ମନତଳେ ବିଭୋର ବେହାଗ ହୋଇ,
ଆତ୍ମମନସ୍କ ତଲ୍ଲୀନତାରେ
ପ୍ରୀତିର ବାସ୍ନାଦେଇ ।

ଜାଣିଛି,
ପରବର୍ତ୍ତୀ ପ୍ରଖର ସୂର୍ଯ୍ୟାଲୋକ
କି ଅମାବାସ୍ୟାର ନିଘଂଚ ଅଂଧାର
କେହି ବି ତୁମକୁ ମୋଠାରୁ
କରିପାରିବେନି ଦୂର ।

ଯେହେତୁ ପ୍ରତି ସତ୍ୟ ସକାଳରେ
ତୁମେ ମୋର ଆପଣାର ହୁଅ
ଆଉ
ପ୍ରତି ଆଦ୍ୟ ଓଁକାରେ
ମୁଁ ହୁଏ ସମାହିତ ତୁମ ଭିତରେ ।

# ସତତିରିଶି

ଏତେ ଦିନ ତୁମ ସ୍ୱର ବାଜି ନଥିଲା
ମୋ କାନରେ ବୋଲି,
ଅସହଣି ନୀରବତାରେ ବିତୁଥିଲା
ପ୍ରତିଟି ସଂଜ ଓ ସକାଳ ।

ରାତିର ଅଂଧାର କରୁଥିଲା
ବିଭ୍ରାଂତ, ଆଉ
ସକାଳ ତ ଛୁଇଁନଥିଲା ଜମାରୁ ।
ତୁମେ ହିଁ ଶିଖାଇଦେଲ
ଜୀବନର ମାନେ,
ମୁଁ ଚିହ୍ନିପାରୁ ନଥିବା
ମୋ ଦେହର ଅଭ୍ୟଂତରକୁ
ତୁମେଇ ଚିହ୍ନା ଚିହ୍ନା ନା ସବୁ ଦେଲ ।

ଏଣୁ ଆଜି ବଢିଚାଲିଛି
ମୋ ହୃଦ୍‌କଂପନ
ସଜାଡିଛି କେତେ ନୂଆ ସପନ
ଯଦିଓ ମୁଁ ଜାଣେ
ମୋ ବାକିଥିବା ପରମାୟୁର
ଫାଂକା ବାଟ ଦେଇ
ତୁମର ଆଉ ଥରେ ଆସିବାର ନାହିଁ ।

# ଅଠତିରିଶ

ସୂର୍ଯ୍ୟ ରହେ ଆକାଶ କୋଳରେ
ନୀଳ ଛାଇଯାଏ ମୋ ଆଖିପତାରେ,
ଅସାଡ଼ ଦେହରେ ।

ପାଦ ତଳ ନୀଳ ଦ୍ରାଘିମାର ମାଟିରେ
ତମ ମଧୁର ସ୍ୱର ଶୁଭୁନି,
ଅଥଚ ପ୍ରତିଧ୍ୱନି ଶୁଭୁଛି ମୋ
ଭିତରେ ବାହାରେ
ଏଣୁ ତ, ଚିରକାଳ ତୁମେ ମୋ ସାଥିରେ ।

ତୁମ ଥିବା ନଥିବାକୁ ନେଇ
ଯେତେସବୁ ଶବ୍ଦଗଢ଼ା ମୋର,
ପ୍ରତି ଶବ୍ଦରେ ମୁଁ ତଲ୍ଲୀନ
ତୁମ ମୁଗ୍ଧ ଆମନ୍ତ୍ରଣରେ ।

ସେତେବେଳେ ଆଉ କେହି ନଥିବେ
ମୋଠାରୁ ତୁମକୁ କି
ତୁମଠାରୁ ମୋତେ ଦୂରେଇ ଦେବାକୁ
ତମେ ଆଉ ମୁଁ
ମୁଁ ଆଉ ତମେ
ନୀଳଦିଗଂତରେ ଗୀତ ଖଂଜୁଥିବା
ଶାଶ୍ୱତ କଂଠରେ ।
ସୂର୍ଯ୍ୟ ରହେ ଆକାଶ କୋଳରେ
ନୀଳ ଛାଇଯାଏ ମୋ ଆଖିପତାରେ ।

# ଅଣଚାଳିଶ

ମୁଁ ଜାଣେ ଏବେ ତୁମର ଆଉ
ଆସିବାର ନାହିଁ,
ଆଖିରେ ଆଖିଏ ପ୍ରେମ
ଫିଙ୍ଗିବାର ନାହିଁ,
ସ୍ପର୍ଶ ବିଭୋର ହେବାର ନାହିଁ ।

ହେଲେ ବି ମୁଁ ପ୍ରତୀକ୍ଷିତା
କାଲେ ତୁମେ ଆସିଯିବ–
ମୋ ମନଲାଖି ବେଶରେ;
ଯଦିଚ ଆସିବାର ନାହିଁ ।
ନବବଧୂର ରୂପ ନେଇ ବସିଛି
ତୁମ ବାଟ ଚାହିଁ
ବାଷ୍ପାକୁଳ ସ୍ୱର ମୋର
ଶୁଭୁନି ଜମାରୁ ତୁମକୁ
ଅପେକ୍ଷାର ଦୀର୍ଘତର ରାସ୍ତାରେ
ପାଦ ଶବ୍ଦ ଶୁଭୁନି ତୁମର ।

ମୁଁ ଜାଣେ ଏବେ ତୁମର ଆଉ
ଆସିବାର ନାହିଁ,
ହଁ, ଆସିବାର ହିଁ ନାହିଁ ।

ହେଲେ, ଥରକୁ ଥର ଫେରିଆସ
ପଛପାଖରୁ ଲୁଗାକାନିକୁ ଟାଣ,
ଆଖିରେ ଚେନାଏ ଶବ୍ଦ ଫିଂଗ,
ଓଠରେ ଓଠ ମିଶାଇ ଫେରିଯାଅ ।
ତା'ପରେ ମୁଁ ମୋ ଭିତରେ
ପୂରି ପୂରି ଯାଏ
ମାଟିହାଂଡିରୁ ପାଣି
ନଉତୁରିବା ଯାଏଁ... ।



